# ଡ଼ିକୁନ୍ ଓ
# ଡ଼ଢ଼େଉ

ରମେଶ ପତ୍ରୀ



ବିଦ୍ୟାଶ୍ରୀ

ପ୍ରଥମ ପ୍ରକାଶ ୧୯୯୫

ପ୍ରକାଶକ
ଶ୍ରୀ ରାମାନନ୍ଦ ମିଶ୍ର
ବିଦ୍ୟାଶ୍ରୀ
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ଅଳଙ୍କରଣ
ଗଜେନ୍ଦ୍ର ଦାସ

ମୁଦ୍ରଣ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ : ଟ ୭.୦୦



ପୁରୁଷ ଚଢ଼େଇଟିଏ ଆଉ ସ୍ତ୍ରୀ ଚଢ଼େଇଟିଏ କେଉଁଠି ଥିଲେ ଉଡ଼ି ଆସିଲେ । ସେମାନେ ଦେଖିଲେ ଅତି ଉଚ୍ଚ ତାଳ ଗଛଟିଏ । ପାଖରେ ଟିକି ଗାଁ ।

ପୁରୁଷ ଚଢ଼େଇ କହିଲା, ''ଟିଅଁ – ଟିଅଁ – ଟିଅଁ.... ଭାରି ବଢ଼ିଆ ଜାଗା ।''



ସ୍ତ୍ରୀ ଚଢ଼େଇଟି ତଳକୁ ଉଡ଼ିଆସି ଦେଖିଲା ଗଛତଳେ କୌଣସି ଗାତ ନାହିଁ, ଉଇହୁଙ୍କା ବି ନାହିଁ । ସେ ଗଛ ଉପରକୁ ପୁଣି ଉଡ଼ିଯାଇ ଦେଖିଲା ଉପରେ କୋରଡ଼ଟିଏ ରହିଛି । ବୋଧହୁଏ ଏହା କାଠହଣା ଚଢ଼େଇର କାମ । ସେ ତା' ଥଣ୍ଟ ସାହାଯ୍ୟରେ କୋରଡ଼ଟି ତିଆରି କରିଥିବ । ଏବେ ସେ ସେଠି ରହୁନାହିଁ । କୋରଡ଼ଟି ଖାଲି ପଡ଼ିଛି ।



ସ୍ତ୍ରୀ ଚଢ଼େଇଟି ଖୁସିରେ ପାଟି କରି କହିଲା, "ଟିକ୍‌ଟିଅଁ ଟିକ୍‌ଟିଅଁ ରହିବା । କୁଟା କାଠି ଆଣି ଜମାଇ ଦେବା ।"

ପୁରୁଷ ଚଢ଼େଇଟି ଉଡ଼ିଆସିଲା କୋରଡ଼ ପାଖକୁ । ସେ ବି ଅନାଇଲା। ତା'ପରେ ଦୁହେଁ ଯାକ ଉଡ଼ିଗଲେ ।



ପୁରୁଷ ଚଢ଼େଇ ଥଣ୍ଟରେ ଶୁଖିଲା ଘାସ ଖଣ୍ଡିଏ ଧରିଲା । ସ୍ତ୍ରୀ ଚଢ଼େଇ ବି ଘାସଟିଏ ଧରିଲା । ଦୁହେଁ ଆଗପଛ ହୋଇ ଉଡ଼ିଆସିଲେ କୋରଡ଼ ଭିତରକୁ । ପୁଣି ଉଡ଼ିଗଲେ ଶୁଖିଲା ଘାସ ଆଣିବା ପାଇଁ ।



କୋରଡ଼ ଭିତରେ ଶୁଖିଲା ଘାସ ବିଛାଇ ଦେଇ ଦୁହେଁ ରହିଲେ । ବାହାରେ ଥଣ୍ଡା ପବନ ବୋହିଲେ ବି ଭିତରଟା ଭାରି ବଢ଼ିଆ ଉଷୁମ ଲାଗୁଥାଏ ।

ନିତିଦିନ ସକାଳ ହେଲେ ଚଢ଼େଇ ଦିଓଟି ଉଡ଼ିଯାଆନ୍ତି । ଦିନସାରା ଚରିବୁଲି ସଞ୍ଜ ପୂର୍ବରୁ ଫେରି ଆସନ୍ତି କୋରଡ଼ ଭିତରକୁ ।

ସମୟ ଗଡ଼ିଚାଲିଲା । ଦିନେ ସ୍ତ୍ରୀ ଚଢ଼େଇଟି ଦିଓଟି ଅଣ୍ଡା ଦେଲା । କିଛି ଦିନ ପରେ ଅଣ୍ଡା ଫୁଟାଇ ସେ ଛୁଆ ବାହାର କଲା । ଭାରି ବଢ଼ିଆ ଛୁଆ ଦିଓଟି । ବଡ଼ ଗୁଲୁଗୁଲିଆ ଦେଖା ଯାଉଥା'ନ୍ତି ।

ଏଣିକି ସ୍ତ୍ରୀ ଚଢ଼େଇଟି ହେଲା ମାଆ ଚଢ଼େଇ ଆଉ ପୁରୁଷ ଚଢ଼େଇଟି ହେଲା ବାପା । ଛୁଆ ଚଢ଼େଇ ଦିଓଟିଙ୍କ ପାଇଁ ମାଆ ଆଉ ବାପା ଚଢ଼େଇଙ୍କ କାମ ବଢ଼ିଗଲା ।





ମାଆ ଚଢ଼େଇଟି ଛୁଆଙ୍କୁ ଜଗେ । ବାପା ଚଢ଼େଇଟି ପଦାକୁ ଉଡ଼ିଯାଏ । ସେ କେଉଁଠୁ ଖୁଦଟିଏ ତ କେଉଁଠୁ ଧାନ ଦି'ଟା ଥଣ୍ଟରେ ଧରି ଫେରେ । ମାଆ ଚଢ଼େଇଟି ସେତେବେଳେ ଥଣ୍ଟ ମେଲା କରିଦିଏ ।

ବାପା ଚଢ଼େଇଟି ତା ଥଣ୍ଟରେ ଖାଇବା ଦରବ ଗୁଞ୍ଜିଦିଏ । ସେ ପୁଣି ଉଡ଼ିଯାଏ ଖାଇବା ଦରବ ଯୋଗାଡ଼ ପାଇଁ ।



ମାଆ ଚଢ଼େଇ ନିଜ ଥଣ୍ଟ ଭିତରୁ ଆହାର ବାହାର କରେ । ସେ କୁନି ଚଢ଼େଇ ଦିଓଟିଙ୍କ ପାଟି ଭିତରେ ଗୁଞ୍ଜିଦିଏ । ଚଢ଼େଇ ଦିଓଟି ସେସବୁ ଖାଆନ୍ତି । ସେମାନଙ୍କ ପେଟ ଭର୍ତ୍ତି ହୋଇଯାଏ । ସେମାନଙ୍କ ପେଟରୁ ଯାହା ବଳେ ମାଆ ଚଢ଼େଇ ଖାଏ ।

ଏବେ କୁନି ଚଢ଼େଇ ଦିଓଟି ଟିକିଏ ବଡ଼ ହେବାକୁ ଲାଗିଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କ ଆହାର ବି ବଢ଼ିଲା । ବିଚରା ବାପା ଚଢ଼େଇ ଏକାକି ଖାଇବା ଦରବ ଆଉ ଆଣିପାରିଲା ନାହିଁ ।





ସେତେବେଳେ ଛୁଆ ଦିଓଟିଙ୍କ ପର ବାହାରି ସାରିଥାଏ । ସେମାନେ ଉଡ଼ି ନ ପାରିଲେ ବି ଟିକି ଟିକି ଗୋଡ଼ରେ ଚାଲି ପାରୁଥିଲେ ।

ଦିନେ ମାଆ ଚଢ଼େଇ ସେମାନଙ୍କୁ କହିଲା, ''ଟିଟିଅଁ ଟିଟିଅଁ............କୁନି ଛୁଆମାନେ, ଆମେ ତୁମ ପାଇଁ ଆହାର ଆଣିବାକୁ ଯାଉଛୁଁ । କଳି କରିବ ନାହିଁ । ଭଲରେ ଥିବ ।''

କୁନି ଚଢ଼େଇ ଦିଓଟି କହିଲେ, ''ଟିଁ ଟୋଁ – ଟିଁ ଟୋଁ....ତୁମେ ଯାଅ । ଆମ ପାଇଁ ଭଲ ଭଲ ଖାଇବା ଦରବ ଆଣିବ ।''





ମାଆ ଆଉ ବାପା ଚଢ଼େଇ କୁନି ଚଢ଼େଇ ଦିଓଟିଙ୍କ ଥଣ୍ଟରେ ଥଣ୍ଟ ଘଷି ଦେଇ ଗେଲ କରି ଦେଲେ । ତା'ପରେ ସେମାନେ ଉଡ଼ିଗଲେ ।

କିଛି ସମୟ ପରେ କୁନି ଚଢ଼େଇ ଦିଓଟି କୋରଡ଼ ବାହାରକୁ ଅନାଇଲେ । ବାଃ, କେତେ ଉଚ୍ଚରେ ସେମାନେ ! ମୁଣ୍ଡ ଉପରେ ନୀଳ ଆକାଶ । ତାଳ ବରଡ଼ାଗୁଡ଼ିକ ଖଡ଼ଖଡ଼ ହେଉଛି । ଆଉ ତଳେ ସୁନ୍ଦର ଘାସ ପଡ଼ିଆ । ପାଖରେ ଗାଁ ରାସ୍ତା । ଭାରି ବଢ଼ିଆ ଲାଗିଲା ସେମାନଙ୍କୁ ।





କୁନି ଚଢ଼େଇଟି ତା ଭାଇକୁ କହିଲା, "ଟିଅଁଟିଟ୍ – ଟିଅଁଟିଟ୍..... ଭାରି ମନ ହେଉଛି ତଳକୁ ଓହ୍ଲାଇବା ପାଇଁ । ହେଲେ ଓହ୍ଲାଇବା କିପରି ? ଉପରୁ ତଳକୁ ଖସିବା ପାଇଁ ଡର ଲାଗୁଛି ।"

ଆର ଚଢ଼େଇଟି କହିଲା, "ଟିଟ୍‌ଟିଅଁ...ଟିଟ୍‌ଟିଅଁ...ଆରେ ଡର କାହିଁକି ? ତୁ ମୋ ପିଠିରେ ବସ । ମୁଁ ଗଛର ଗଣ୍ଡିରେ ପାଦ ଖପାଇ ଖପାଇ ଓହ୍ଲାଇ ପଡ଼ିବି । ତା'ପରେ ଏଣେତେଣେ ବୁଲିବା । ମାଆ ବାପା ଫେରିବା ପୂର୍ବରୁ ପୁଣି ଗଛ ଉପରକୁ ଚଢ଼ିଯିବା ।"

କୁନି ଚଢ଼େଇଟି ରାଜି ହୋଇଗଲା । ସେ ଡେଇଁପଡ଼ିଲା ତା ପିଠି ଉପରକୁ । ଏବେ ଚଢ଼େଇଟି ତାଳଗଛରେ ପାଦ ଖପାଇ ଖପାଇ ତଳକୁ ଖସିଲା । ସେମାନେ ଯେତେବେଳେ ତଳକୁ ଖସୁଥା'ନ୍ତି, ତାଙ୍କର ମନ ଆନନ୍ଦରେ ପୂରି ଯାଉଥାଏ ।





ସେତେବେଳେ ଗାଁର ପାଠୁଆ ପିଲା ଚିକୁନ୍ ତା ସାଙ୍ଗମାନଙ୍କ ସହିତ ସ୍କୁଲକୁ ଯାଉଥିଲା । ଚିକୁନ୍‌ର ଆଖି ପଡ଼ିଗଲା ତାଳଗଛ ଆଡ଼କୁ । ସେ ତା ସାଙ୍ଗମାନଙ୍କୁ କହିଲା, ''ହେଇ ଦେଖ ତାଳଗଛ ଉପରକୁ । କେମିତି କୁନି ଚଢ଼େଇଟି ଆଉ ଗୋଟିଏ କୁନି ଚଢ଼େଇ ଉପରେ ବସିଛି । ବଡ଼ ମଜାରେ ସେମାନେ ତଳକୁ ଖସୁଛନ୍ତି ।''

ସାଙ୍ଗମାନେ ଦେଖିଲେ । ଚିକୁନ୍ ସେମାନଙ୍କୁ କହିଲା, ‘‘କୁନି ଚଢ଼େଇ ଦିଓଟି ଯେମିତି ତଳେ ପହଞ୍ଚିଯିବେ ସେମାନଙ୍କୁ ଧରି ପକାଇବା । ଘରକୁ ନେଇ ପାଳିବା । ସେମାନଙ୍କ ପାଇଁ ଘର ତିଆରି କରିଦେବା । ବଡ଼ ମଜା ଲାଗିବ ।



କିଛି ସମୟ ପରେ କୁନି ଚଢ଼େଇ ଦିଓଟି ତଳେ ପହଞ୍ଚିଗଲେ । ଚିକୁନ୍ ଓ ସାଙ୍ଗମାନେ ସେମାନଙ୍କୁ ଖପ୍‌କିନା ଧରି ପକାଇଲେ ।

ଚଢ଼େଇ ଦିଓଟି ଚିଁଚିଁଉଁ–ଚିଉଁ–ଚିଉଁ ଶବ୍ଦ କରୁଥା'ନ୍ତି । ହେଲେ ଚିକୁନ୍ ଆଉ ତା ସାଙ୍ଗମାନେ କ'ଣ ଛାଡ଼ିଦେବେ !



ଟିକୁନ୍ ସାଙ୍ଗମାନଙ୍କୁ କହିଲା, ‘‘ଆଜି ଆଉ ସ୍କୁଲ ଯିବା ନାହିଁ । ପାଠ ପଢ଼ିବା ନାହିଁ । ଦିନ ତମାମ୍ ଖେଳିବା ।’’

ସେମାନେ ସ୍କୁଲ ଗଲେ ନାହିଁ । ସମସ୍ତେ ଟିକୁନ୍ ଘରକୁ ଫେରିଲେ ।





ସେମାନଙ୍କୁ ଦେଖି ଟିକୁନ୍‌ର ମାଆ କହିଲେ, ''ଆଜି ସ୍କୁଲକୁ ଗଲ ନାହିଁ ?''

ଟିକୁନ୍ ଚଢ଼େଇ ଦିଓଟିଙ୍କୁ ଦେଖାଇ କହିଲା, ''ମାଆ, ଆଜି ଆମେ ସ୍କୁଲକୁ ଯିବୁ ନାହିଁ । ଏଇ ଦେଖନ୍ତୁ କେଡ଼େ କୁନି କୁନି ଚଢ଼େଇ ଦିଓଟିଙ୍କୁ ଧରି ଆଣିଛୁ । ଏମାନଙ୍କ ସହିତ ଆଜି ଖେଳିବୁ ।''

ମାଆ ବିରକ୍ତ ହେଲେ । କହିଲେ, ''ଚିକୁନ୍, ତୋ ବାପା ଗାଁକୁ ଯାଇଛନ୍ତି ବୋଲି ତୁ କାହା କଥା ମାନୁ ନାହୁଁ । ବଡ଼ ଦୁଷ୍ଟ ହୋଇଯାଉଛୁ । ଆଜି ତୋ ବାପା ଫେରିବେ । ଯଦି ସେ ଜାଣିବେ ତୁ ସ୍କୁଲ ନ ଯାଇ ଚଢ଼େଇ ଧରିଛୁ ତେବେ ରାଗିବେ ।''



ଚିକୁନ୍ ମାଆ କଥା ଶୁଣିଲା ନାହିଁ । ଘରେ ଗୋଟିଏ ପୁରୁଣା କାଠ ପେଟି ଥିଲା । ପେଟି ମୁହଁରେ ସେ ବାଉଁଶ ପାତିଆ ଆଣି କଣ୍ଟା ବାଡ଼େଇଲା । ଡାବଲର ମୁହଁ ପଟଟି ଜାଲି ଲାଗିଲା ଭଳି ଦେଖାଗଲା । ତା'ରି ଭିତରେ ଚଢ଼େଇ ଦିଓଟିଙ୍କୁ ସେ ରଖିଦେଲା । ସେମାନଙ୍କ ଥଣ୍ଟ ମେଲାକରି ସେ କ୍ଷୀର ଦେଲା, ମୁଢ଼ୀ ପୂରାଇଲା ।





ଚଢ଼େଇ ଦିଓଟି କିଛି ଖାଇଲେ ନାହିଁ । ପିଲାଙ୍କ ଖେଳ ଚାଲିଲା । ସନ୍ଧ୍ୟା ପୂର୍ବରୁ ସାଙ୍ଗମାନେ ନିଜ ନିଜ ଘରକୁ ଚାଲିଗଲେ ।

ରାତିରେ ଚିକୁନ୍‌ର ବାପା ଘରେ ପହଞ୍ଚିଲେ । ସେ ଚିକୁନ୍‌ର ଖଟ ପାଖରେ ପହଞ୍ଚିଲେ ।। ଚିକୁନ୍ ନିଦରେ ଶୋଇ ଯାଇଥାଏ । ଠିକ୍ ଏତିକିବେଳେ ଖଟତଳୁ ଶୁଭିଲା – ଟିଅଁ...ଟିଅଁ...ଟିଟଟିଅଁ ।

ବାପା ଚିକୁନ୍‌କୁ ଉଠାଇଲେ । ସେ ପଚାରିଲେ ଚିକୁନ୍, ଖଟତଳେ କ'ଣ ଶୁଭୁଛି ?

ଚିକୁନ୍ ଖଟତଳୁ ପେଟିଟି କାଢ଼ି କହିଲା, ''ବାପା ହେଇ ଦେଖ, କେତେ କୁନି କୁନି ଚଢ଼େଇ ଦିଓଟି ମୁଁ ନେଇ ଆସିଛି ।''

ତା'ପରେ ଚିକୁନ୍ ସେମାନଙ୍କୁ କିପରି ଧରିଲା ଗୋଟି ଗୋଟି କରି ସମସ୍ତ କଥା କହିଗଲା । ସେ ଭାବୁଥିଲା ତା'କଥା ଶୁଣି ବାପା ଖୁସି ହେବେ । ହେଲେ ବାପା ଖୁସି ହେଲେ ନାହିଁ । ସେ କହିଲେ, ''ଚିକୁନ୍ ଚଢ଼େଇମାନଙ୍କୁ ଧରି ତୁ ଠିକ୍ କଲୁ ନାହିଁ । ସେମାନଙ୍କୁ ନ ପାଇ ସେମାନଙ୍କ ବାପା ମାଆଙ୍କ ମନରେ କିଭଳି ଦୁଃଖ ହେଉଥିବ ତୁ ଜାଣି ନାହୁଁ । ତୁ ଆମ୍ଭମାନଙ୍କ ପାଖରେ କେତେ ଆନନ୍ଦରେ ଅଛୁ । ଯଦି କେହି ତତେ ଆମ୍ଭମାନଙ୍କ ପାଖରୁ ଛଡ଼ାଇନେଇ ରଖିବ ତୁ କ'ଣ କରିବୁ ?''

ଚିକୁନ୍ କହିଲା - ''କାନ୍ଦିବି ।''



ବାପା କହିଲେ, ''ବୁଝିଲୁ ଚିକୁନ୍, କୁନି କୁନି ଚଢ଼େଇ ଦିଓଟି ତାଙ୍କ ବାପା ମାଆଙ୍କୁ ଝୁରି ହେଉଛନ୍ତି । ତେଣୁ ସେମାନେ କାନ୍ଦୁଛନ୍ତି । ଏପରି କାମ କରିବା କ'ଣ ଠିକ୍ ହେଲା ?''

ବାପା କଥା ଶୁଣି ଚିକୁନ୍‌ର ମନ ବି ଦୁଃଖରେ ଭାଙ୍ଗିଗଲା । ସେ କାନ୍ଦ କାନ୍ଦ ହୋଇ କହିଲା, ''ବାପା, ମୁଁ ଭୁଲ୍ କରିଛି । ଏପରି କାମ ଆଉ କେବେ କରିବି ନାହିଁ । କାଲି ସକାଳ ହେବାକ୍ଷଣି କୁନି ଚଢ଼େଇ ଦିଓଟିଙ୍କୁ ନେଇ ସେମାନେ ରହୁଥିବା ଗଛ ପାଖରେ ଛାଡ଼ି ଆସିବି ।''



ସେଦିନ ରାତିରେ ଚିକୁନ୍ ଶୋଇଲା । ହେଲେ ତାକୁ ନିଁଦ ହେଲା ନାହିଁ । ରାତିସାରା କୁନି ଚଢ଼େଇ ଦିଓଟିଙ୍କ ଚିଁ ଚିଁ କାନ୍ଦ ଶୁଣି ତା ଆଖିରୁ ଲୁହ ଝରି ପଡୁଥାଏ । ସେ ମଝି ମଝିରେ ଖଟରୁ ଉଠି କୁନି ଚଢ଼େଇଙ୍କ ପାଖକୁ ଆସୁଥାଏ । ସେ ସେମାନଙ୍କୁ କହୁଥାଏ, ''ହେ ମୋର ଚିକି ଚଢ଼େଇ, ଆଉ କାନ୍ଦ ନାହିଁ । ଆଜିପାଇଁ ମୋତେ କ୍ଷମା କରିଦିଅ । ସକାଳ ହେବାକ୍ଷଣି ମୁଁ ତୁମକୁ ତୁମ ଗଛ ପାଖରେ ନେଇ ଛାଡ଼ି ଆସିବି ।''



ତା' ପରଦିନ ସକାଳ ହେଲା । ଚିକୁନ୍ ତା ସାଙ୍ଗମାନଙ୍କୁ ଡାକିଲା । ସେମାନଙ୍କ ସହିତ କୁନି ଚଢ଼େଇ ଦିଓଟିଙ୍କୁ ଧରି ସେ ଚାଲିଲା ତାଳଗଛ ନିକଟକୁ ।

ସେ ତାଳଗଛ ଉପରକୁ ଅନାଇଲା । କୋରଡ଼ ଭିତରୁ ମାଆ ଓ ବାପା ଚଢ଼େଇ ଦିଓଟି ବାହାରକୁ ମୁହଁ ବଢ଼ାଇଛନ୍ତି ।





କୁନି ଚଢ଼େଇ ଦିଓଟିଙ୍କୁ ଟିକୁନ୍ ଗଛତଳେ ଛାଡ଼ିଦେଲା । ସେମାନଙ୍କ ମଧ୍ୟରୁ ଜଣେ ଗୋଡ଼ ଖପେଇ ଗଛ ଚଢ଼ିବାକୁ ଲାଗିଲା । ଅନ୍ୟ ଚଢ଼େଇଟି ତା' ଉପରକୁ ଡିଆଁ ମାରିଲା । ସେମାନେ ଗଛ ଉପରକୁ ଥରିଥରି ହୋଇ ଉଠୁଥିଲେ ।

ଏ ଦୃଶ୍ୟ ଦେଖି ଟିକୁନ୍ ଓ ତା ସାଙ୍ଗମାନଙ୍କ ମନ ଭାରି ଖୁସି । ମାଆ ଆଉ ବାପା ଚଢ଼େଇ କୋରଡ଼ ଭିତରୁ ବାହାରକୁ ଆସି କୁନି ଚଢ଼େଇ ଦିଓଟିଙ୍କ ପାଖରେ ଉଡ଼ି ବୁଲିଲେ ।



କିଛି ସମୟ ପରେ ଚଢ଼େଇ ଦିଓଟି କୋରଡ଼ ପାଖରେ ପହଞ୍ଚି ତା ଭିତରକୁ ପଶିଗଲେ । ସେମାନଙ୍କ ପଛରେ ମାଆ ଓ ବାପା ଚଢ଼େଇ ଦିଓଟି ବି ପଶିଗଲେ ।

ଚିକୁନ୍ ଘରକୁ ଫେରିବା ବେଳେ ସାଙ୍ଗମାନଙ୍କୁ କହିଲା, ‘‘ଆଉ କେବେ ଚଢ଼େଇ ଧରିବା ନାହିଁ ।’’